# ଗେରସ୍ତ ଭାରିଯା କଥା

## ରହସ୍ୟ ।



ଶ୍ରୀ ବ୍ରଜସୁନ୍ଦର ଦାଶଙ୍କ ଦ୍ଵାରା :
ପ୍ରଣୀତ ଓ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

କଟକ, ଚନ୍ଦ୍ରୋଦୟ ଯନ୍ତ୍ରାଳୟରେ ମୁଦ୍ରତ ।



Printed by H. K. Das,
Chandrodaya Press,
CUTTACK.
1930.

ମୂଲ୍ୟ ଠ ୦ / ଏକଅଣା ମାତ୍ର ।

# ଗେରସ୍ତ ଭାରିଯା କଥା ରହସ୍ୟ ।

(ନନ୍ଦରେଣୁ—ବୃତ୍ତେ)

ଶୁଣ ସାଧୁଜନ, ଦେଇ ମନକର୍ଣ୍ଣ, ଗେରସ୍ତ ଭାରିଯାକଥା । ଯାହାକୁ ଶୁଣିଲେ ପଥର ହୋଇଲେ, ସହଜେ ଯାଏ ତରଳି ସେ । ବଡ଼ ରହସ୍ୟ କଥା । ହଜି ଯାଏ ଗୁରୁ ମନୋବ୍ୟଥା ସେ ।୧। ଏକ ନଗରରେ, ଜଣେ ସାତଥରେ, ସାତଟି ବିବାହ କଲା । ଅଷ୍ଟମ ଥରକୁ, ଏକ ଯୁବତୀକୁ, ପୁଣି ବିବାହିତ ହେଲା ସେ । ଅତି ବୃଦ୍ଧ-କାଳରେ । ଯେସନ ଘଣ୍ଟି ବାନ୍ଧନ୍ତି ଗଳାରେ ସେ ।୨। ଗ୍ରାମଶେଷେ ଘର, ଅଟଇ ତାହାର, ଧନ ଥିବାରୁ ତା ଘରେ । ମନେ ଗର୍ବ କରି, କିଛି ନ ବିଚାରି, ଲାଗଇ ସତ ମନରେ ସେ । ତଳେ ମିଥ୍ୟା ନୁହଇ । ମହାଜ୍ଞାନୀମୁଖେ ଶୁଣାଯାଇ ସେ ।୩। ସେହି ଲୋକଘରେ, ଦ୍ୱିତୀୟ ଦିନରେ, ଥରେ ପଡ଼େ କଳି ପାଳି । ଗେରସ୍ତ ଭାରିଯା, ଦୁହିଙ୍କ ମଧରେ ଲାଗେ ପୁଣି ଘୋର କଳି ସେ । ଶୁଣି ତାହାଙ୍କ ଗାଳି । ଦାଣ୍ଡେ ଲୋକେ ମାରୁଥାନ୍ତି ତାଳି ସେ । ୪ । କଳି ନ ହୁଅଇ, ଭାତ ଲୁଗା ପାଇଁ, କିବା ଧନ ଘର ପାଇଁ । ସେ ବର ସେ ସ୍ତ୍ରୀ, ମନକୁ ନ ଆସେ, ତେଣୁ ସେ କଳି କରଇ ସେ । ଧିକ ବିଧାତା କହି । ବସି-ଥାଏ ଗାଲେ ହସ୍ତ ଦେଇ ସେ ।୫। ଏପରି ଦେଖିଣ, ପ୍ରତିବାସୀଗଣ, ସେ ବୃଦ୍ଧ ଲୋକକୁ ଡାକି । କହିଲେ ତୁମ୍ଭେତ, କଲ ବିପରୀତ, ବୃଦ୍ଧ ହୋଇଲ କାହିଁକି ହେ । ଏବେ ବୁଦ୍ଧିଏ କର । ତାକୁ ଦିଅ ଯେ ଗୁଡ଼ପତର ହେ ।। ତା ଶୁଣି ସେ ବୃଦ୍ଧ, ହୃଦେ ବହି କ୍ରୋଧ, କହେ କି ସମଜ ମୋତେ । ବସିବା ସ୍ଥାନରୁ, ଉଠିଯାଇ ପୁଣି, ଗାଳିଦେଲା ଯେତେ ତେତେ ସେ । ଲୋକେ ଶୁଣିଲେ ସହୁଁ । ବେଶି କିଛି ନ କହିଲେ ତହୁଁ ସେ ।୭। ଦୁଇ ଚାରି ଦିନେ ଏହି ପରକାରେ, ପାଳି ପଡ଼େ ଥରେଥରେ । ଦୁଇଟି ବରଷ, ଅତି କଷ୍ଟେ ଶେଷ, ହୋଇଗଲା ଗଡ଼ଗଡ଼ି ସେ ପୁଣି ଯାହା ହୋଇଲା । କିବା ମାହେନ୍ଦ୍ର ଯୋଗ ପଡ଼ିଲା

ସେ ।୮। ଦିନେ ସେହି ନାରୀ, ପତିଙ୍କ ଧିକ୍କାରି, ଏହି କଥା ଥିଲା କହି । ସପ୍ତମୀପୂଜାକୁ, ଦେବ ଯେ ସନ୍ଧ୍ୟାକୁ, ନୂଆ ଗହଣା ଖଞ୍ଜାଇ ସେ । ତୁମ୍ଭେ ନ ଦେବ ଯେବେ । ଘରେ ରହିବ ନାହିଁ ଟି କେବେ ସେ ।୯। ବୃଦ୍ଧର ଯୁବତୀ, କଳମଞ୍ଜି ପୋତି, ବିଷ୍ଟିଳ୍ପା ହୋଇ ରହିଲା । ଅଁଜ କଳପାଳି, ନ ପକାଇ ବାଳୀ, ମହାକାଳି ଭିଆଇଲା ସେ । କେତେ ଦିନ ଅନ୍ତରେ । ବୃଦ୍ଧ ଯୁବତୀକଥା ବିଗୁରେ ସେ ।୧୦। ତହୁଁ ସୁନାରିକି, ଅଣାଇଲା ଡାକି, ଶୁଣି ସେ ଆସନ୍ତେ ଖରେ । ସୁନାରୀକି ଡାକି, ବୃଦ୍ଧ କହେ କାକି, ନୂଆ ଗହଣା ହେବାରେ ସେ । ତୁମ୍ଭେ ସନ୍ତୁଷ୍ଟ ହେବ । ମୋର ପାଶେ କାଲେ କାଲି ଥିବ ସେ । ୧୧ । ଚତୁରୀ ନାଗରୀ, କହିଲା ବିଗୁରି, ଯାହା ଯାହା ଦରକାର । ସେହି ବୃଦ୍ଧ ଶୁଣି, ତହି ତତକ୍ଷଣି, ଫେଇଣ ସିନ୍ଦୁକ ଦ୍ୱାର ସେ ଗୃହୀ ସୁନା ଗୁଡ଼ାଏ । ଓଜ-ନରେ ସୁନାରୀକି ଦିଏ ସେ ।୧୨। କହିଲା ତାହାକୁ, ଶୁଣ ହେ ଏଥକୁ, ବିଶେଷ ତାକିଦ ଜାଣ । ଷଷ୍ଠୀପୂଜାଦିନ, ଅଳଙ୍କାରମାନ, ନିଶ୍ଚୟ କରିବ ଦାନ ସେ । ଯେବେ ଏଥୁଁ ଟଳିବ । ତୁମ୍ଭ କପାଳେ ମନ୍ଦ ଫଳିବ ସେ । ୧୩ । ଶୁଣିଲା ସୁନାରୀ, ଶୁଣିଲା ସୁନାରି, ତହୁଁ ଦୋକାନେ ଗଲା । ଲୋକ ଲଗାଇଣ, ଦିନେ ଜେହେ ଲାଗିଣ, ଅଳଙ୍କାର ଗଢ଼ାଇଲା ସେ । ତହୁଁ ସଫା ହୋଇଲା । ଦେବା କଥା ଯେ କାଲିକି ଗଲା ସେ ॥ ବିଧି ବିଡ଼ମ୍ବଣା, କେ କରିବ ମନା, ଯାହା ହୁଏ ଯେତେ-ବେଳେ । ସେ ଦିନ ରାତିରେ, ସେ ସୁନାରୀଘରେ, ସିନ୍ଧ ହୋଇ ଚୋରମାନେ ସେ । ସର୍ବସମ୍ପତ୍ତି ତାର । ଚୋରି ହେଲା ଗହଣା ସଙ୍ଗରେ ସେ ॥ ସକାଳୁ ଉଠିଣ, ସୁନାରୀ ଦେଖିଣ, ପଡ଼ି କଟାଭୁଷ ପ୍ରାୟେ । ମୂର୍ଚ୍ଛା ହୋଇଗଲା, ଚେତା ନ ରହିଲା, ଧାଇଁ ଆସି ପଡ଼ୋଶୀଏ ସେ । ମୁଖେ ସିଞ୍ଚିଲେ ପାଣି । କେତେକ୍ଷଣେ ଚେତି କହେ ବାଣୀ ସେ ॥ ସବୁ ଗଲା ମୋର, ନାହିଁ କିଛି ଡର, ସେ ବୃଦ୍ଧ ଧନୀ ଗହଣା । କାହୁଁ କେଉଁପରି, କରିବ ତିଆରି, ଏ ବିଷୟେ ହୁଏଁ ବଣା ସେ । ଲୁଚି ଛ ଅଦିନରେ । କହି ମୁଣ୍ଡ ପିଟିଲା ପଥରେ ସେ ।୧୭। ସୁନାରିର ଦଶା,

ଦେଖିଣ ପଡ଼ସା, ଲୋକେ ମିଳି ବାଗୁରିଲେ । ମରିଯିବ ବୋଲି,
ସର୍ବେ ଗଲେ ଚଳି, ବୃଦ୍ଧକୁ ଡାକି ଆଣିଲେ ସେ । ସବ ଫେଡ଼ି
କହିଲେ ॥ ତାର ରକ୍ଷାପାଇଁ ନିବେଦିଲେ ସେ । ୧୮ । ସୁନାର
ବାପଦେ, ଲୋକ ଖୋସାମଦେ ବୃଦ୍ଧ ମୁଖ ନ ଫିଟିଲା । ଦୁଃଖିତ
ହୋଇଣ, ହାୟ ପୂରାଇଣ, ଘରବପଦ ଭାବିଲା ସେ । ତହୁଁ
ଚଳିଲା ଘରେ । ଖଟରେ କହିଲା ସ୍ତ୍ରୀ ଆଗରେ ସେ । ୧୯ । ଶୁଣି
ତାର ନାରୀ, ବୁଢ଼ାକୁ ଧିକ୍କାରି, କହିଲା କିସ ନ କଲୁ । ଏତେ
ଯେ ଟଙ୍କାର, ମୋର ଅଲଙ୍କାର, ଅକାରଣ କରି ଦେଲୁ ସେ ।୨୦।
ଆରେ ଜନମ ଓଲୁ । ବଣଓଲୁ ତୁ ଜାତିରେ କୋହ୍ଲୁ ସେ ।
ଗେରସ୍ତ ଶୁଣିଣ, ତା କଟୁ ବଚନ, କପାଳରେ ମାରି ହାତ ।
ତୁନି ହୋଇ ରହି, ବସିଲା ଘୁମାଇ, ନ ଶୁଣିଲା ପ୍ରାୟେ ସେତ ସେ ।
ବୁଦ୍ଧି ନ ଦେଖି ଆଉ । ଗ୍ରାସିଗଲା ତାକୁ ଚିନ୍ତାରାହୁ ସେ । ୨୧ ।
ସେ ଦିନ ସେ ନାରୀ, ବହୁମାନ କରି, ଅନ୍ନ ଜଳ ନ ଛୁଇଁଲା ।
ଗେରସ୍ତ ବହୁତ, ବୁଝାଇ କହନ୍ତେ, କେବେହେଁ ସେ ନ ବୁଝିଲା
ସେ । ସନ୍ଧ୍ୟା ହୁଅନ୍ତେ ଆସି । ପଳାଇଲା ବାପଘରେ ରୁଷି
ସେ । ୨୨ । ଏଣେ ତା ଗେରସ୍ତ, ଜାଣିଣ ଏମନ୍ତ, ଚିନ୍ତିତ
ହୋଇ ରହିଲା । କାହାକୁ ତାହାକୁ, ପୁଣି ଆଣିବାକୁ, ଆଉ ସେ
ନ ପଠାଇଲା ସେ । ଦେଖି ଝିଅକୁ ବାପ । କହେ ନ କର ଆଉ
ସନ୍ତାପ ସେ । ୨୩ । ପିତାଙ୍କୁ କିଛିହିଁ, ଝିଅଟି ନ କହି, ମାତାଙ୍କ
ପାଖକୁ ଗଲା । ମାତାଙ୍କ ପାଶରେ, ଦୂରୁଁ ଅଧିକରେ, କାନ୍ଦଣା
ମୁଣ୍ଡ ପିଟିଲା ସେ । ବୋହୁ ଦେଲୁ କା ହାତେ । ବିଷ ନ ଦେଲୁ
କିପାଇଁ ଭାତେ ସେ । ୨୪ । ଏ ବୟସେ କେତେ, ଧୈର୍ଯ୍ୟ ଧରି
ମର୍ତ୍ତ୍ୟେ, ବୁଢ଼ାଟା ସଙ୍ଗେ ଚଳିବ । ଆଉ ମୁଁ ଏଣିକି, ରହି ପାରିବ
କି, କି ଉପାୟ କହ ଭାବ ସେ । ତୁତ ଜନ୍ମ ଦେଇଛୁ । ମାଈ
କର୍ମକୁ ତ ନ ଦେଇଛୁ ସେ । ୨୫ । କୂଅରେ ପଡ଼ିବ, ନଈରେ
ପଡ଼ିବ, ଦଉଡ଼ାରେ ବା ଜହରେ । ଜୀବନ ହାରିବ, କେବେହେଁ ନ
ବଞ୍ଚିବ, ସତ୍ୟ ଏ ମୋ ତୋ ପାଶରେ ସେ । ନବ ଯୌବନ-
କାଳ । ଫେଡ଼ କହୁଛି ହେଲାଣି କାଳ ସେ । ୨୬ । ମୁଁ ସାମାନ୍ୟ

ଜନ, ସ୍ଥିର କର ମନ, କହୁଛି ସରଳ ହୃଦେ । ଯେଉଁ ଯୁବତୀର, ଯୁବାକଷ୍ଟ ଦୂର, ନୋହେ; ସେ ମହା ସଙ୍କଟେ ସେ । ତେଜ୍ୟା କରି ଦଅଇ । ମାତ୍ର ଯୌବନ ସୁଖ ବାଞ୍ଛଇ ସେ ।୨୬।



( ରାଧା ଧରି ସଖୀ କର—ବୃତ୍ତେ )

ଝିଅର ଦେଖି ଏ ଦଶା । ମାତା ଭାବିଲା ହେଲା ଲୋକହସା ଯେ । ବୁଦ୍ଧି ପାଞ୍ଚିଲା ସେତ ସହସା । ସୁଜନେ ହେ । ୧ । କହିଲା ଶୁଣ- ଦୁହିତା । ଦୁଇକୁଳକୁ ହୋଇପାରୁ ହିତା ଲୋ । ନୋହିଲେଟି ଦୁଇକୁଳେ ଚିନ୍ତା ମୋ ରାଣି ଲୋ ।୨। ଧୈର୍ଯ୍ୟ ଧରି ଏବେ ରହ । କାହାର ଆଗରେ କିଛି ନ କହ ଲୋ । ଆଉ ଅଳ୍ପଦିନ ଦୁଃଖ ସହ । ମୋ ରାଣି ଲୋ । ୩ । ସୂତ୍ରରେ ଗୁନ୍ଥି ପାଷାଣ । ଯେ ବଳିକ ମାରଇ ସେ ବଡ଼ଜନ ଲୋ । ସୂତ୍ରେ କରିବ ଦୁଃଖ ଖଣ୍ଡନ । ମୋ ରାଣି ଲୋ । ୪ । ସେ ସୂତ୍ର ଅଟଇ ଏହି । ତୋ ଗେରସ୍ତଘରେ ରହ ତୁ ଯାଇଁ ଲୋ । ଏଠି ଦିନେ ଦୁଇଦିନ ରହି । ମୋ ରାଣି ଲୋ । ୫ । ଆଉ ରହି ମାସ ଚାରି । ତହୁଁ ଛାଡ଼ ପତ୍ର ଲେଖାଇ କରି ଲୋ । ନେବା ବୁଢ଼ାଠାରୁ ବୃତ୍ତି ଧରି । ମୋ ରାଣି ଲୋ ।୬। ଘଟାଇବୁ ଅନ୍ୟ ବର । ତା ହାତରେ ଦେବି ଦ୍ୱିତୀୟ ଥର ଲୋ । ସେତ ଅଟଇ ଅତି ସୁନ୍ଦର । ମୋ ରାଣି ଲୋ ।୭। ସେ ନୋହିଛି ବିବାହିତ । ଉତ୍ତମ ଅଟଇ ତା' ଜାତି ଗୋତ୍ର ଲୋ । ଇଂରଜୀ ଓଡ଼ିଆରେ ପଣ୍ଡିତ । ମୋ ରାଣି ଲୋ । ୮ । ଭାଇ ଭଉଣୀ ସମାନ । ସୁନ୍ଦର ଦିଶିବ ଜଣଙ୍କୁ ଜାଣ ଲୋ । ସେତ ଅଟଇ ଯେ ସାଧାରଣ । ମୋ ରାଣି ଲୋ ।୯।



ଲୀଳା—ବୃତ୍ତ ।

ମାତାଙ୍କ ବଚନ, ଦୁହିତା ଶୁଣିଣ, ଅତି ହରଷିତା ହେଲା । ଭାଇଙ୍କ ସଙ୍ଗରେ, ପଠାଅ କାଲିରେ, ମନରେ ବୁଝି ବୋଇଲା । ସେ ବୁଢ଼ାକୁ । ହରଣ କରିବାକୁ ।୧। ତହିଁ ଆରଦିନ, ସନ୍ଧ୍ୟା ସମୟେଣ, ଭାଇର ସଙ୍ଗେ ଭଉଣୀ । ଗେରସ୍ତର ଘରେ. ପରବେଶ କରି, ରହିଲା ହୋଇ ଘରଣୀ । ସେ ସୁନ୍ଦରୀ । ଦିନଗଲା ଦୁଇଚାରି ।୨। ସପତମୀପଜା

ସ୍ୱପତମୀପୁଜା ଦନେ ତା ଘରଯା, ବୁଢ଼ାକୁ କହିଲା ମୋତେ ।
ନୂଆ ଅଲଙ୍କାର, ଦେହରେ ମୋହର, ଖଞ୍ଜାଇ ଦଅ ତୁରତେ ।
ପୁଜାଣ ହେ । ନୋହିଲେ ମନ୍ଦ ଘଟଣ । ୩ ।



( ନିର୍ମଳଚନ୍ଦ୍ରମଣ୍ଡଳ ଶରଦେ ବରାଜ ବୃତ୍ତେ )

(ଏଠାରେ ତାମସିକ—ବୃତ୍ତେ)

ଘରଣୀର କଥା ଶୁଣି ବୁଢ଼ା କହେ ପ୍ରିୟେ ।
ଏପର ଅଧୀର ହେବା ଉଚତ କି ହୋଏ ।
ଆଜ କାହୁଁ ଅଣିଦେବ ।
ଅର୍ଥ ଦରଶନେ ମୁଁ କି ଗଢ଼ାଇ ପାରବ ।୧।
କହୁଅଛୁ ତୋର କର ଧର ରେ ନାଗରୀ ।
ପାଦରୁ ମସ୍ତକ ଯାଏ ନିଷ୍ଠେ ଖଞ୍ଜିକର ।
ନୂଆ ନୂଆ ଗହଣାରେ ।
ନେବ ବାଲଘାଏା ବସାଇଣ ଶୂଅଷ୍ଟରେ । ୨ ।
ମଗାଇ ଦେଇଛୁ ନୂଆ ବନାରସୀପାଟ ।
ସେହ ପାଟ ପିନ୍ଧିଥିବ ଦଣିଣ ଚହଟ ।
ଚହଟଚମ୍ପାନାଗରୀ ।
କଣାଦାସଅରଜକୁ ଘେନ ଦୟାକର । ୩ ।
ବୁଢ଼ାର ଏପର କଥା ଶୁଣନ୍ତେ ଛଇଲୀ ।
"କି କହିଲୁ ନାହିଁ" ଅରେ ଖେଣ୍ଡାବୁଢ଼ା ବୋଲି ।
ଉଠି ବସିଲା ସେ ବାଲୀ ।
ଯେତେ ଗାଳି ସଞ୍ଚିଥିଲା ଅଜ ଦେବ ଢ଼ାଳି । ୪ ।
ବୋଇଲା ମାଙ୍କଡ଼ମୁହାଁ ଜଙ୍ଗଲର ପଶୁ ।
ବୋଧନେଇଁ ପରେ ପୁଣି ନିଅଁ ଫିଙ୍ଗି ବସୁ ।
ତୁଲପଣା ତୁ ହେବରେସା ।
ତୋହର ମୁଣ୍ଡରେ ବଜ୍ର କଲଣି କି ବସା । ୫ ।

ବୁଢ଼ା ଶୁଣି ଅନ୍ତରଗେ କହିଲା କାମୁକ ।
ତୋହ ଲଗି ଜୀବନକୁ ହରାଇବ ମୁକ ?
ତୁ ତ ହଠହଠା କଲୁ ।
ଷଷ୍ଠୀଦିନେ କାହିଁପାଇଁ ତୁହି ଯା ନ ମଲୁ । ୬ ।
ନର୍ଲଜ୍ଜ ତୋ ମୁଖେ ତଲେ ମାନ ଲାଜ ନାହିଁ ।
ମନୁଷ୍ୟ ବୋଲିଣ ତୋତେ କିଏ ଯେ କହଇ ।
ଛି ଛି ଛି ଛି ରେ ଛତରା ।
ମଦ୍ଦ ଥିଲେ ଅଉ କାହୁଁ ପାଇଥାନ୍ତୁ ପରା । ୭ ।
ଆଲୋ କେତେ ଭୂଆସୁଣୀ ସଂସାରେ ନାହାନ୍ତି ।
ତୁ କୁଳବାହୁଙ୍ଗୀ କୁଳେ କାଳୀ ଦେଉ ଶନ୍ଧି ।
କହୁଁ ମୁଁ ବଡ଼ ସୁନ୍ଦରୀ ।
ତୋତେ ବଳି କେତେଛନ୍ତି ଯା ସୁନ୍ଦରୀ ନାରୀ ।୮।
ତୋ ଗୁଣରେ ଗଛ ଜନ୍ତୁ ଆରେ ନଅଁଶିଆ ।
ବଡ଼ ହଠହେଟିଆ ତୁ ଦଇବଦଣ୍ଡିଆ ।
ପୋଡ଼ାମୁହାଁରେ ଖଣ୍ଡିଆ ।
ପୁଣି ଅଟୁ ଅରସିକ ଜନମ ବେଠିଆ । ୯ ।
ଅଲୋ ଅଲୋ ଢେଙ୍ଗି ତୁ କପଟୀ ଅଲକ୍ଷଣୀ ।
ଚୂନା କଲୁ ସୁନାଘର ଧୋଇ ମୋ ଘରଣୀ ।
ହାଣ୍ଡିଖାଇ ତୁ ଓଲାଇ ।
ମୋର ଖାଇ କେଡ଼େ ଗଣ୍ଡି ଦେଇଛୁ ଫୁଲାଇ । ୧୦ ।
ତୁ ତ ବଡ଼ ସୁଲକ୍ଷଣ ମୁହଁଟା ଠାକରା ।
ଦୁଇ ଗାଲେ ଦୁଇପୋଷ ମୁଗ ହେବ ଭରା ।
ଠକ ଭକୁଆ ଟିକୁଆ ।
ତୋତେ ଖାଇଦେଲେ ହେବ ବଡ଼ ଉକସିଆ ।୧୧।
ଅଲୋ ଗୁଣ୍ଡାଚୁଣି ଭଗାରୁଣି କଳଙ୍କିନ ।

ପଡ଼ର ଗୋଟାଉଥିଲୁ ହୋଇ ଅଭାଗିନୀ ।
ତୋର ବାପଘରେ ଥାଇ ।
ମୋ ଘରେ ଦେଖାଉ ଭଲ ମାଲିକାଣୀ ହୋଇ ।୧୨।
ଅରେ ରେ କୃପଣ ପାପୀ ଗର୍ବି ହେଉ କେତେ ।
ଧନକଣା ହେଉବଣା ଅଛି ଥାଉଁ ଏଥେଁ ।
ଛୁଛୁ ଛୁଛୁ ଛୁଛୁ ଛୁଛୁ ।
ବୁଢ଼ାକାଳେ ତୋ ବଗ୍ଗୁର ନ ଦେଖିଲି କଛୁ ।୧୩।
ଅତ ଦୟାବତୀ ମତେଁ୍ୟ ତୁହି ଏକାକନୀ ।
ଅଣିଅଛୁ ତୋତେ ଅଶୀଟଙ୍କାକୁ ଯେ କଣି ।
ପୋଷି କାଳସର୍ପିଣୀଟା ।
ହେଉଅଛୁ ମୁହିଁ ସିନା ଏତେ ହଟହଟା । ୧୪ ।
କ କହିଲୁ ଅଣ୍ଟୁକୁଡ଼ା ବୋଲି ସେହି ଗାଳି ।
କେ ଶୁଣିବ କର୍ଣ୍ଣେ ଆଉ ଯା ଯା ଦେଲା ଗାଳି ।
ସେ ବୁଢ଼ାର ଦୁଷ୍ଟା ନାରୀ ।
ବୁଢ଼ାକୁ ଉଠାଇ ଆସି ଗ୍ରୁଅଣୀକି ଧରି । ୧୫ ।
ଗେରସ୍ତ ଆଗରେ ତାର ଚୁଟିକି ଧଇଲା ।
ଭାରିଯା ସେ ଗ୍ରୁଅଣୀରେ ପଡ଼ଣ ପିଟିଗଲା ।
ବୁଢ଼ା ଗ୍ରୁଅଣୀ ଛଡ଼ାଇ ।
ମାରି ମାରି ନାରୀଟିକି ଦେଲା ଯେ ଗଡ଼ାଇ । ୧୬ ।
କେତେକ୍ଷଣ ପରେ ନାରୀ ଉଠି ଝାଡ଼ି ଝୁଡ଼ି ।
ବୁଢ଼ାର ମୁଣ୍ଡରେ ମାରେ ଖଡ୍ଡୁ ଚୁଡ଼ି ବାଡ଼ି ।
କାନ୍ଦ କାନ୍ଦ ରାଗେ ବାଲି ।
ମର ବାଡ଼ିଖିଆ ବୋଲି ଦେଇ ତାକୁ ଗାଳି ।୧୭।
ସେ ପ୍ରହାରେ ବୁଢ଼ାମୁଣ୍ଡୁ ରକତ ବହିଲା ।
ସେ ନାରୀର ଖଡ୍ଡୁ ଚୂଡ଼ି ଚେପା ହୋଇଗଲା ।

ବୁଢ଼ା ବଡ଼ ପାଟିକର ।
ଗୋଟା କେତେ କହୁଣୀ ମାଇଲା ଚୁଟି ଧର ।୧୮।
ମାଆ ଲୋ ବୋପା ଲୋ ମଲି ରଡ଼ି ଛୁଡ଼େ ବାଳୀ ।
ତା ରଡ଼ିରେ ସାହି ଯାକ ପଡ଼ିଲା ଉଚ୍ଛୁଳି ।
ଧାଇଁ ସମସ୍ତେ ଆଇଲେ ।
ଜଣେ ଦୁଇଜଣ ବୁଢ଼ାଁ କଲି ଛାଡ଼ିଦେଲେ ।୧୯।

( ଚକ୍ରକେଳି—ବୃତ୍ତେ )

ସେହି ବୃଦ୍ଧର ଯୁବତୀ ବଇଲେ । କାନ୍ଦୁଅଛୁ କର ମାରି କପାଳେ ॥
ବୋଲେ ଜଳିଲି ନାହିଁ ଜଳଜଳା । କିବା ଚନ୍ଦ୍ରବାଡ଼ିରେ ସେ ନମଲୁ ॥
ଏହିପରି କାନ୍ଦି କାନ୍ଦି ଶୋଇଲା । ଦିନେ ଦ୍ୱିଦିନ କାଳ ବହିଗଲା ॥
ତାର ବାପ ଏହା ଶୁଣି ଆସିଲା । ଯାହାଇଛା ବୁଢ଼ାକୁ ଗାଳିଦେଲା ॥
ପିତା ଅନେକ ତାହାଙ୍କୁ ବୋଧକରି । ଗୃହେ ନେଲା କନ୍ୟାର କରଧରି ॥
କଳହରେ ଦଶହରା ସରିଲା । ଦୁର୍ଗା ଦେଖିବା ବୃଥା ହୋଇଗଲା ॥
ଝିଅ ମାଆ ପାଶେ ବହୁ କାନ୍ଦିଲା । ମା ଅନେକ ବୁଝାଇ କହିଲା ॥
ପ୍ରବୋଧନା ଶୁଣି ସେ ନାରୀଈଶ । ରହିଲା ତହିଁ ଧାଇଁ ଧବଲେଶ ॥
ମାସ ଗୃହ ପାଞ୍ଚ ଗଲା ଏପରି । ଦିନେ ବାପ ମା ଭାଇ ବସିକରି ॥
ପୁଣି ପଢ଼ୁଆ ଯୁବକ ବାବୁକୁ । ଦେବା ସ୍ଥିରକଲେ ଶୁଣ ଏଥକୁ ॥
ବୃଦ୍ଧଙ୍କୁ ଛାଡ଼ପତ୍ର ଲେଖିନେଲେ । ଜଉତିଷକୁ ଡକାଇ ଆଣିଲେ ॥
ଦିନ ଗଣାଇ ଯଥା ବିଧାନରେ । କରାଇଦେଲେ ଦ୍ୱିତୀୟ ତାହାରେ
ଶୁଣ ସାଧୁଜନେ ଏଥୁଅନ୍ତରେ । ବିଧି ଭଲ ଘଟାଇଲେ ଏଥିରେ ॥
ମାଟି ସଙ୍ଗରେ ମାଟି ମିଶିଗଲା । ଜଳ ସଙ୍ଗରେ ଜଳ ମିଶିଗଲା ॥
ତେଜ ସଙ୍ଗରେ ତେଜ ମିଶିଗଲା । ବାୟୁ ସଙ୍ଗରେ ବାୟୁ ମିଶିଗଲା ॥
ଆକାଶରେ କି ଆକାଶ ମିଶିଗଲା । ଝିଅ ଜୁଆଇଁ ମନହିଁ ମିଶିଲା ॥
ସେ ଦମ୍ପତି ସୁଖେ ଦିନ କାଟିଲେ । ବ୍ରଜସୁନ୍ଦର ଗୀତରେ ଭାଷିଲେ ॥

ସମାପ୍ତ ।

Printed by H. K. Das, C. Press, CUTTACK.